ଜନସ୍ୱାସ୍ଥ୍ୟ ସଭା ଉଦ୍ଦେଶ୍ୟରେ - ଆଲୋଚନାମାଳା : ପୁସ୍ତିକା -(୨)

ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ ......

# ତୁମେ ଜାଣିଛ କି ?

## (ଜନସ୍ୱାସ୍ଥ୍ୟ ଉପରେ ଜଗତିକରଣର ପ୍ରଭାବ)



**ଭାରତ ଜ୍ଞାନ ବିଜ୍ଞାନ ସମିତି - ଓଡ଼ିଶା**

## ଭ୍ରମ ସଂଶୋଧନ

ପୃଷ୍ଠା ସଙ୍ଖ୍ୟାରେ ଭୁଲ ରହିଛି

☞ ପୃଷ୍ଠା ୧୨ ପରେ ପୃଷ୍ଠା ୨୧-୨୯ ପଢନ୍ତୁ ।

☞ ପୃଷ୍ଠା ୨୯ ପରେ ପୃଷ୍ଠା ୧୩-୨୦ ପଢନ୍ତୁ ।

ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ

# ତୁମେ ଜାଣିଛ କି ?

(ଜନସ୍ୱାସ୍ଥ୍ୟ ଉପରେ ଜଗତିକରଣର ପ୍ରଭାବ)



୧୯୭୮ ମସିହାରେ ଆଲ୍‌ମାଆଟାଠାରେ ଆନ୍ତର୍ଜାତୀୟ ଘୋଷଣା କରାଯାଇଥିଲା - "୨୦୦୦ ମସିହା ସୁଦ୍ଧା ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ" । ଏଥିରେ ଅନ୍ୟ ରାଷ୍ଟ୍ରମାନଙ୍କ ପରି ଭାରତ ମଧ୍ୟ ଜଣେ ଦସ୍ତଖତକାରୀ ।

ଭାରତ ଜ୍ଞାନ ବିଜ୍ଞାନ ସମିତି - ଓଡିଶା
ସି-୨, ହାଉସିଂ ବୋର୍ଡ କଲୋନୀ, ବରମୁଣ୍ଡା,
ଭୁବନେଶ୍ୱର -୭୫୧୦୦୩

ମୂଲ୍ୟ - ୬ ଟଙ୍କା ମାତ୍ର

ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ

# ତୁମେ ଜାଣିଛ କି ? (ଭାଗ - ୨)

(ଜନସ୍ୱାସ୍ଥ୍ୟ ଉପରେ ଜଗତିକରଣର ପ୍ରଭାବ)


ପ୍ରକାଶକ : ଭାରତ ଜ୍ଞାନ ବିଜ୍ଞାନ ସମିତି-ଓଡିଶା
ସି-୨, ହାଉସିଂ ବୋର୍ଡ କଲୋନୀ, ବରମୁଣ୍ଡା,
ଭୁବନେଶ୍ୱର - ୩, ଫୋନ/ଫ୍ୟାକ୍ସ-୫୫୦୮୯୧

ପ୍ରକାଶନ କାଳ : ଅଗଷ୍ଟ'୨୦୦୦

ମୁଦ୍ରଣ : ଜୟ ଭାରତ, ଭୁବନେଶ୍ୱର

ମୂଲ୍ୟ : ୬ ଟଙ୍କା ମାତ୍ର


Health for all.....

# Do you know ? (Volume -2)

(What Globalisation does to Peoples Health)


Publisher Bharat Gyan Vigyan Samiti, Orissa,
C-2, Housing Board Colony,
Baramunda,
Bhubaneswar - 751003,
Tel/Fax-(0674)550891

First Publicaiton : August'2000

Printed at : Jaya Bharat, Bhubaneswar

**Price : Rs. 6/-**



**ପ୍ରସ୍ତୁତ : ଡାକ୍ତର ମଦନ ମୋହନ ପ୍ରଧାନ**


ଇଂରାଜୀ ପୁସ୍ତକ "What Globalisation does to peoples Health !" ଅନୁକରଣରେ ପ୍ରସ୍ତୁତ କରାଯାଇଛି ।

"ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ" କଥାଟି ସ୍ଲୋଗାନ ମଧ୍ୟରେ
ବନ୍ଦୀ ହୋଇ ରହିଗଲା । ସାରା ବିଶ୍ୱରେ ପ୍ରକୃତ ଆନ୍ତରିକତା ଓ
ନିଷ୍ଠା ରହିଥିଲେ, କଥାଟିର ମର୍ମକୁ ଠିକ୍ ଭାବରେ କାର୍ଯ୍ୟକାରୀ
କରିବା ସକାଶେ ଉପାୟମାନ ପହଞ୍ଚିଯାଇଥାନ୍ତା ।

"ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ" ଭିତରେ "ସମସ୍ତ" ଶବ୍ଦଟିକୁ
ଚତୁରତାର ସହ ଉପେକ୍ଷା କରିଦିଆଯାଉଛି ।
"ସମସ୍ତ" ଶବ୍ଦର ଅର୍ଥ ସମଗ୍ର ପୃଥିବୀ ଦୃଷ୍ଟିରୁ
ସବୁଦେଶ ଓ ଦେଶ ଦୃଷ୍ଟିରୁ ସବୁ ଲୋକଙ୍କ କଥାକୁ ବୁଝାଏ ।

ମାତ୍ର ଉପଭୋଗ ଦୃଷ୍ଟିରୁ ଅଳ୍ପ କେତୋଟି ଦେଶ ଅଧିକ ଅର୍ଥ ଖର୍ଚ୍ଚ କରୁଥିଲା ବେଳେ ଅଧିକାଂଶ ବିକାଶଶୀଳ ତଥା ଅନୁନ୍ନତ ଦେଶମାନଙ୍କରେ ସାଧାରଣ ସର୍ବନିମ୍ନ ଆବଶ୍ୟକତାଟିର ପୂରଣ ପାଇଁ ଅର୍ଥର ଘୋର ଅଭାବ ରହୁଛି ।

ଆମ ଭାରତ ଭଳି ଏତେବଡ ଦେଶରେ ସ୍ୱାସ୍ଥ୍ୟ ସକାଶେ ସହରାଞ୍ଚଳ ରମାତ୍ର ୨୦ ପ୍ରତିଶତ ଲୋକଙ୍କପାଇଁ ଦେଶର ୮୦ ପ୍ରତିଶତ ଅର୍ଥ ଖର୍ଚ୍ଚ ହେଉଛି ।

ଏହି ପୁସ୍ତିକାରୁ ଏହିଭଳି କେତୋଟି ଭିତିରି କଥା ଆମେ ଜାଣିପାରିବା । ଜନସ୍ୱାସ୍ଥ୍ୟ ସଭା ନିମିତ ଜାତୀୟ ସଂଯୋଜନା କମିଟି ଦ୍ୱାରା ପ୍ରସ୍ତୁତ "ସ୍ୱାସ୍ଥ୍ୟ ଉପରେ ଜଗତିକରଣର ପ୍ରଭାବ – ପୁସ୍ତିକା –୧" ରୁ ତଥ୍ୟ ଗୁଡିକ ଉଦ୍ଧୃତ ହୋଇଅଛି ।

## ତୁମେ ଜାଣିଛ କି ?

ପୃଥିବୀରେ କେଉଁ ପ୍ରକାର ଖର୍ଚ୍ଚ ପାଇଁ ଅଗ୍ରାଧିକାର ଦିଆ ଯାଇଛି ?

| ବାର୍ଷିକ ଖର୍ଚ୍ଚର ପରିମାଣ | (୧୯୯୮ ମସିହା ମାନବ ବିକାଶ ରିପୋର୍ଟରୁ ଉଦ୍ଧୃତ ତଥ୍ୟ) |
|---|---|
| ସମସ୍ତଙ୍କ ପାଇଁ ଶିକ୍ଷା | ୬ ବିଲିୟନ୍ ଡଲାର |
| ଯୁକ୍ତରାଷ୍ଟ୍ର ଆମେରିକାରେ ପ୍ରସାଧନ ସାମଗ୍ରୀ | ୮ ବିଲିୟନ୍ ଡଲାର |
| ସମସ୍ତଙ୍କ ପାଇଁ ପାନୀୟ ଜଳ ଓ ପରିମଳ ବ୍ୟବସ୍ଥା | ୯ ବିଲିୟନ୍ ଡଲାର |
| ୟୁରୋପରେ ଆଇସ୍ କ୍ରିମ | ୧୧ ବିଲିୟନ୍ ଡଲାର |
| ସବୁ ମହିଳାଙ୍କ ପାଇଁ ପ୍ରଜନନ ସ୍ୱାସ୍ଥ୍ୟ | ୧୨ ବିଲିୟନ୍ ଡଲାର |
| ୟୁରୋପ ଏବଂ ଯୁକ୍ତରାଷ୍ଟ୍ର ଆମେରିକାରେ ଅତର ଓ ସୁବାସିତ ଦ୍ରବ୍ୟ | ୧୨ ବିଲିୟନ୍ ଡଲାର |
| ମୌଳିକ ସ୍ୱାସ୍ଥ୍ୟ ଓ ପୃଷ୍ଟିକର ଖାଦ୍ୟ | ୧୩ ବିଲିୟନ୍ ଡଲାର |
| ୟୁରୋପ ଓ ଯୁକ୍ତରାଷ୍ଟ୍ର ଆମେରିକାର ପ୍ରିୟ ଖାଦ୍ୟ | ୧୭ ବିଲିୟନ୍ ଡଲାର |
| ଜାପାନରେ ବ୍ୟାବସାୟିକ ଆମୋଦ ପ୍ରମୋଦ | ୩୫ ବିଲିୟନ୍ ଡଲାର |
| ୟୁରୋପରେ ସିଗାରେଟ୍ | ୫୦ ବିଲିୟନ୍ ଡଲାର |
| ୟୁରୋପରେ ସୁରାପାନ | ୧୦୫ ବିଲିୟନ୍ ଡଲାର |
| ପୃଥିବୀରେ ଚେତନା ହାରକ ଔଷଧ (ନାର୍କୋଟିକ୍ ଡ୍ରଗ୍) | ୪୦୪ ବିଲିୟନ୍ ଡଲାର |
| ପୃଥିବୀରେ ପ୍ରତିରକ୍ଷା ବାବଦରେ ଖର୍ଚ୍ଚ | ୭୮୦ ବିଲିୟନ୍ ଡଲାର |

ବିଦ୍ର:ଏକବିଲିୟନ୍=୧ ନିଖର୍ବ ଅର୍ଥ ୧ରେ ୧୧ଟି ଶୂନ (୧୦୦୦୦୦୦୦୦୦୦୦)

ଏକ ଡଲାର ମୂଲ୍ୟ ପ୍ରାୟ ୪୦ ଟଙ୍କାରୁ ୪୬ ଟଙ୍କା ମଧ୍ୟରେ ପରିବର୍ତ୍ତିତ ହୁଏ ।

**ଏଭଳି ଆକାଶପାତାଳ ତାରତମ୍ୟ ପାଇଁ ସଂଗ୍ରାମ ଲୋଡା ।**

## ତୁମେ ଜାଣିଛ କି ?

ପୃଥିବୀରେ ଖର୍ଚ୍ଚର ଧାରା କଅଣ ?

| ଦ୍ରବ୍ୟମାନଙ୍କର ତାଲିକା | ସବୁଠାରୁ ଧନୀ ରାଷ୍ଟ୍ର (୨୦%) | ସବୁଠାରୁ ଗରୀବ ରାଷ୍ଟ୍ର (୨୦%) |
|---|---|---|
| ମୋଟ ଘରୋଇ ଖର୍ଚ୍ଚ | ୮୬% | ୧.୩% |
| ମାଛ ମାସଂରେ ଖର୍ଚ୍ଚ | ୪୫% | ୫% |
| ଶକ୍ତି | ୫୮% | ୪% |
| ଟେଲିଫୋନ ଲାଇନ୍ | ୭୪% | ୧.୫% |
| କାଗଜ | ୮୪% | ୧.୫% |
| ଯାନ ବାହାନ | ୮୭% | ୧% |

(୧୯୯୮ ମାନବ ବିକାଶ ରିପୋର୍ଟରୁ ଉଦ୍ଧୃତ)

ଜଣେ ଭାରତୀୟ ହିସାବରେ

## ତୁମେ ଜାଣିଛ କି ?

ଯଦି ଜାଣିଛ ତେବେ '✓' ଚିହ୍ନ ଦେଇ ଉତ୍ତର ଦିଅ (ପ୍ରତି ପ୍ରଶ୍ନର ମୂଲ୍ୟ ୧୦ ନମ୍ବର) ।

୧) ଭାରତୀୟମାନେ ସ୍ୱାସ୍ଥ୍ୟପାଇଁ (ଖାଦ୍ୟ ବସ୍ତ୍ର, ଆମୋଦ ପ୍ରମୋଦ ତୁଳନାରେ) ଅନ୍ୟ ଦେଶ ଅପେକ୍ଷା କମ୍ ଖର୍ଚ୍ଚ କରନ୍ତି । ଠିକ୍ / ଭୁଲ୍

୨) ଅନ୍ୟ ଦେଶ ବିଶେଷ କରି ପାଶ୍ଚାତ୍ୟ ଦେଶ ତୁଳନାରେ ଭାରତରେ ସ୍ୱାସ୍ଥ୍ୟପାଇଁ ଘରୋଇ ବ୍ୟୟ ଅପେକ୍ଷା ସରକାରୀ ବ୍ୟୟ ଅଧିକ । ଠିକ୍ / ଭୁଲ୍

୩) ଅନ୍ୟ ଦେଶ ତୁଳନାରେ ଭାରତରେ ପ୍ରତିରକ୍ଷା ବାବଦରେ ବ୍ୟୟ ସ୍ୱାସ୍ଥ୍ୟ ଓ ଶିକ୍ଷାର ବ୍ୟୟ ଅନୁପାତରେ କହିବାକୁ ଗଲେ ସବୁଠାରୁ କମ୍ । ଠିକ୍ / ଭୁଲ୍

୪) ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ବ୍ୟୟ କ୍ରମେ ବଢ଼ିବାରେ ଲାଗିଛି । ଠିକ୍ / ଭୁଲ୍

୫) ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ଖର୍ଚ୍ଚପାଇଁ ଅଧିକ ଖର୍ଚ୍ଚ ଗ୍ରାମାଞ୍ଚଳକୁ ଯାଏ । ଠିକ୍ / ଭୁଲ୍

୬) ସ୍ୱାସ୍ଥ୍ୟ ଅବସ୍ଥା ଖରାପ ଥିବା ରାଜ୍ୟଗୁଡିକ ସ୍ୱାସ୍ଥ୍ୟପାଇଁ ଅଧିକ ଖର୍ଚ୍ଚ କରନ୍ତି (ଯାହାକି ସେମାନେ କରିବା ଉଚିତ) । ଠିକ୍ / ଭୁଲ୍

୭) ପରିବାର ନିୟୋଜନ ସରକାରୀ ସ୍ୱାସ୍ଥ୍ୟ ଖର୍ଚ୍ଚର ଏକ ମୁଖ୍ୟ ଅଂଶ ଅଟେ । ଠିକ୍ / ଭୁଲ୍

୮) ମା' ଓ ଶିଶୁ ସ୍ୱାସ୍ଥ୍ୟସେବା ପାଇଁ ପରିବାର ନିୟୋଜନ ଯୋଜନାର ଏକ ବଡ ଅଂଶ ଖର୍ଚ୍ଚ ହୋଇଥାଏ । ଠିକ୍ / ଭୁଲ୍

୯) ଡାକ୍ତର ଖାନାରେ ଅନ୍ତର୍ନିବାସୀ ରୋଗୀ ପିଛା ପକେଟ ଖର୍ଚ୍ଚ ୧୯୮୬ ମସିହାରେ ୮୮୬ ଟଙ୍କା ଥିବାବେଳେ ୧୯୯୬ ମସିହାରେ ଏହା ଦ୍ୱିଗୁଣିତ ହୋଇଥିଲା । ଏହା ବାର୍ଷିକ ମୁଦ୍ରାସ୍ଫିତିର ୧୦% ବୋଲି ଆଶା କରିପାରିବା । ଠିକ୍ / ଭୁଲ୍

୧୦) ୧୯୯୬ ମସିହାରେ ଡାକ୍ତରଖାନାର ଅର୍ନ୍ତନିବାସୀ ରୋଗୀ ପିଛା ଜନସ୍ୱାସ୍ଥ୍ୟ ବ୍ୟବସ୍ଥାରେ ଶତକଡା ୬୦ଭାଗ ବିନିଯୋଗ ହୋଇଥିବା ବେଳେ ୧୯୯୬ ମସିହା ବେଳକୁ ଏହା ଶତକଡ଼ା ୪୫ଭାଗକୁ ଖସି ଆସିଥିଲା ଠିକ୍ / ଭୁଲ୍

୧୧) ଗରିବ ପରିବାର ମାନଙ୍କରେ ରୋଗ ଚିକିତ୍ସା ପାଇଁ ମୁଖ୍ୟତଃ ଅତ୍ୟାବଶ୍ୟକ ଔଷଧ ଓ ମୌଳିକ ସ୍ୱାସ୍ଥ୍ୟ ସେବାପାଇଁ ଖର୍ଚ୍ଚ କରା ଯାଇଥାଏ । ଠିକ୍ / ଭୁଲ୍

୧୨) ସ୍ୱାସ୍ଥ୍ୟପାଇଁ ବିଶ୍ୱବ୍ୟାଙ୍କ ସମେତ ପାଶ୍ଚାତ୍ୟ ଦେଶରୁ ଆସୁଥିବା ସାହାଯ୍ୟ ସରକାରୀ ଖର୍ଚ୍ଚ ତୁଳନାରେ ଏକ କ୍ଷୁଦ୍ର ଅଂଶ ମାତ୍ର । ଠିକ୍ / ଭୁଲ୍

୧୩) ଆମ ଦେଶ ଅର୍ଥ ଦ୍ୱାରା ବନ୍ଧା ପଡିଛି । ଏହି ଅର୍ଥର ଅଧିକାଂଶ ଭାଗ ଅତ୍ୟାବଶ୍ୟକ କ୍ଷେତ୍ରପାଇଁ ଖର୍ଚ୍ଚ ହେଉଛି । ତେଣୁ ଏହି ସାହାଯ୍ୟ ସକାଶେ ଆମେ ନିଜକୁ ଧନ୍ୟ ମଣିବା କଥା । ଠିକ୍ / ଭୁଲ୍

ତୁମେ ୧୩୦ ନମ୍ବରରୁ କେତେ ନମ୍ବର ପାଇଲ ହିସାବ କର ।

(ଉତ୍ତର ଗୁଡିକୁ ପରପୃଷ୍ଠାରେ ଦେଖ ।)

## ଏବେ ପ୍ରଶ୍ନଗୁଡିକର ଉତ୍ତର ଜାଣିବା ।

ପ୍ରଶ୍ନ -୧ : ଭୁଲ୍

ଭାରତୀୟମାନେ ସେମାନଙ୍କ ମୋଟ ଘରୋଇ ଉତ୍ପାଦନର ଶତକଡା ୬ ଭାଗ ସ୍ୱାସ୍ଥ୍ୟ ପାଇଁ ଖର୍ଚ୍ଚ କରିଥାନ୍ତି (ଉଭୟ ଘରୋଇ ଓ ସରକାରୀ ଖର୍ଚ୍ଚକୁ ମିଶାଇ) । ଏହା ଅନ୍ୟ ଉନ୍ନତ ରାଷ୍ଟ୍ର ମାନଙ୍କ ଖର୍ଚ୍ଚ ଅନୁସାରେ ପ୍ରାୟ ସମାନ ଅଟେ (ଆମେରିକାରେ ଏହି ଖର୍ଚ୍ଚ ଅଧିକ ଅଟେ) । ମାତ୍ର ଅନ୍ୟ ବିକାଶଶୀଳ ରାଷ୍ଟ୍ରମାନଙ୍କ ତୁଳନାରେ ଏହା ଅଧିକ ଅଟେ । ନିମ୍ନରେ ପ୍ରଦତ୍ତ ଗ୍ରାଫ ଚିତ୍ରରୁ ଏହା ସହଜରେ ଅନୁମାନ କରିହେବ ।

ମାତ୍ର ବାସ୍ତବ ଭାବରେ ବିଚାର କଲେ ଏହା କମ୍ ଅଟେ । ଉଦାହରଣ ସ୍ୱରୂପ ଜଣେ ଭାରତୀୟ ବାର୍ଷିକ ୨୫୦ ଟଙ୍କା ଖର୍ଚ୍ଚ କଲାବେଳେ, ଜଣେ ବ୍ରିଟେନ୍‌ବାସୀ ୨୫୦୦ ଟଙ୍କା ଖର୍ଚ୍ଚ କରିଥାନ୍ତି । ସାରା ଏସିଆର ରାଷ୍ଟ୍ର ଗୁଡିକର ଖର୍ଚ୍ଚକୁ ଏକତ୍ର ବିଚାର କଲେ ଏହା ୧୦୦୦ ଟଙ୍କା ଅଟେ ।

## ଚିତ୍ର -୧- ଆୟ ଓ ୭୦ ଟି ଦେଶରେ ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ଖର୍ଚ୍ଚ
## (୧୯୯୦ ମସିହାର ତଥ୍ୟ ଅନୁସାରେ)

ସ୍ୱାସ୍ଥ୍ୟ ପାଇଁ ଖର୍ଚ୍ଚ ହେଉଥିବା ଘରୋଇ ଉତ୍ପାଦନର ଅଂଶ




ମୁଣ୍ଡ ପିଛା ଘରୋଇ ଉତ୍ପାଦନ

(୧୯୯୧ ମସିହାର ଆନ୍ତର୍ଜାତୀୟ ଡଲାରର ମୂଲ୍ୟ ଅନୁସାରେ)

ପ୍ରଶ୍ନ-୨ : ଭୁଲ

ସ୍ୱାସ୍ଥ୍ୟ ପାଇଁ ହେଉଥିବା ସମୁଦାୟ ବ୍ୟୟର ସରକାରୀ ଅଂଶ ମାତ୍ର ୨୨% ଅଟେ । ଏହା ସମଗ୍ର ପୃଥିବୀରେ ସର୍ବନିମ୍ନ ଅଟେ । ଅନ୍ୟ ସମସ୍ତ ଉନ୍ନତ ପୁଞ୍ଜିବାଦୀ ରାଷ୍ଟ୍ରଗୁଡିକୁ ମିଳିତ ଭାବରେ ବିଚାର କଲେ ଏହା ଶତକଡା ୭୫ ହେବ । ସମସ୍ତ ଉନ୍ନତ ଦେଶମାନଙ୍କ ମଧ୍ୟରେ କେବଳ ଯୁକ୍ତରାଷ୍ଟ୍ର ଆମେରିକାର ଏ ବାବଦରେ ଖର୍ଚ୍ଚ ସବୁଠାରୁ କମ୍ ଅଟେ । ତଥାପି ଏହା ସେଠାରେ ଶତକଡା ୪୪ ଅଟେ, ଯାହାକି ଭାରତର ପ୍ରାୟ ୨ ଗୁଣ ।

ଏହା ଉଲ୍ଲେଖଯୋଗ୍ୟ ଯେ ଯେତେବେଳେ ସରକାର ଓ ଅନ୍ୟାନ୍ୟ ନୀତି ନିର୍ଦ୍ଧାରକମାନେ ଭାରତକୁ ଆଖିରେ ରଖି ସ୍ୱାସ୍ଥ୍ୟପାଇଁ ଘରୋଇକରଣ ବ୍ୟବସ୍ଥା କଥା କହନ୍ତି, ସେମାନେ ଭୁଲିଯାନ୍ତି ଯେ ଘରୋଇ କରଣ କ୍ଷେତ୍ରରେ ଭାରତ ସବୁଠାରୁ ଆଗରେ ରହିଛି । ଆମେ ଏଠାରେ ମନେରଖିବା ଆବଶ୍ୟକ ଯେ ବହୁ ପାଶ୍ଚାତ୍ୟ ରାଷ୍ଟ୍ରରେ ସୁଦୂରପ୍ରସାରୀ ସ୍ୱାସ୍ଥ୍ୟ କେନ୍ଦ୍ରମାନଙ୍କ ମାଧ୍ୟମରେ ସ୍ୱାସ୍ଥ୍ୟ ସେବା ପ୍ରଦାନ କରାଯାଏ । କିନ୍ତୁ ଅନ୍ୟ ରାଷ୍ଟ୍ରମାନଙ୍କରେ ଘରୋଇ ସ୍ୱାସ୍ଥ୍ୟସେବା ବ୍ୟବସ୍ଥା ମାଧ୍ୟମରେ ସ୍ୱାସ୍ଥ୍ୟ ସୁବିଧା ପ୍ରଦାନ କରାଯାଏ । ସରକାରୀ ସ୍ୱାସ୍ଥ୍ୟସେବା ବ୍ୟବସ୍ଥା ମାଧ୍ୟମରେ ଗରିବ ଓ ବୃଦ୍ଧ ବୃଦ୍ଧାମାନେ ସାହାଯ୍ୟ ପାଆନ୍ତି । ମାତ୍ର ଅନ୍ୟମାନେ ବିଭିନ୍ନ ପ୍ରକାର ବୀମା ଯୋଜନା ମାଧ୍ୟମରେ ସ୍ୱାସ୍ଥ୍ୟସେବା ପାଇଥାନ୍ତି ।

## ସ୍ୱାସ୍ଥ୍ୟପାଇଁ ସରକାରୀ ଖର୍ଚ୍ଚର ଅଂଶ




ମୁଣ୍ଡ ପିଛା ଘରୋଇ ଉତ୍ପାଦନ

(୧୯୯୧ ମସିହାର ଆନ୍ତର୍ଜାତୀୟ ଡଲାରର ମୂଲ୍ୟ ଅନୁସାରେ)

(ମୁରେ, ଗୋବିନ୍ଦରାଜ୍ ଏବଂ ଚେଲ୍ରାଜଙ୍କ ପୃଷ୍ଠଭୂମି ତଥ୍ୟରୁ ଉଦ୍ଧୃତ)

## ଟେବୁଲ୍-୧ - ଜାଗତିକ ସ୍ତରରେ ସ୍ୱାସ୍ଥ୍ୟ ପାଇଁ କରାଯାଉଥିବା ବ୍ୟୟ - ୧୯୯୦

| ସ୍ୱାସ୍ଥ୍ୟ ପରିସଂଖ୍ୟାନ ଭିତ୍ତିକ କ୍ଷେତ୍ର | ବିଶ୍ୱ ଜନସଂଖ୍ୟାର ପ୍ରତିଶତ | ମୋଟ ସ୍ୱାସ୍ଥ୍ୟ ବ୍ୟୟ (ବିଲିୟନ ଡଲାରରେ) | ସମଗ୍ର ପୃଥିବୀର ସ୍ୱାସ୍ଥ୍ୟ ବ୍ୟୟ(ପ୍ରତିଶତ ହିସାବରେ) | କ୍ଷେତ୍ରୀୟ ସ୍ତରରେ ମୋଟ ସରକାରୀ ସ୍ୱାସ୍ଥ୍ୟ ବ୍ୟୟ ପ୍ରତିଶତ | ମୋଟ ଜାତୀୟ ଉତ୍ପାଦନରେ ସ୍ୱାସ୍ଥ୍ୟ ପାଇଁ ବ୍ୟୟ ପ୍ରତିସତ | ମୁଣ୍ଡ ପିଛା ସ୍ୱାସ୍ଥ୍ୟ ବ୍ୟୟ (ଡଲାରରେ) | ମୁଣ୍ଡ ପିଛା ଖର୍ଚ୍ଚର ଅନୁପାତ (SSA=1) |
|---|---|---|---|---|---|---|---|
| ପ୍ରତିଷ୍ଠିତ ବଜାର ଅର୍ଥନୀତି | ୧୫ | ୧୪୮୩ | ୮୭ | ୬୦ | ୯.୨ | ୧୮.୬୦ | ୭୮.୯ |
| ପୂର୍ବତନ ୟୁରୋପୀୟ ସମାଜବାଦୀ ଅର୍ଥନୀତି ସମୂହ | ୭ | ୪୯ | ୩ | ୭୧ | ୩.୬ | ୧୪୨ | ୬.୦ |
| ଲାଟିନ୍ ଆମେରିକା | ୮ | ୪୭ | ୩ | ୬୦ | ୪.୦ | ୧୦୫ | ୪.୫ |
| ମଧ୍ୟ ପ୍ରାଚୀ | ୧୦ | ୩୯ | ୨ | ୫୮ | ୪.୧ | ୭୭ | ୩.୩ |
| ଅନ୍ୟାନ୍ୟ ଏସୀୟ ରାଷ୍ଟ୍ର ଓ ଦ୍ୱୀପ ସମୂହ | ୧୩ | ୪୨ | ୨ | ୩୯ | ୪.୫ | ୬୧ | ୨.୬ |
| ଭାରତ | ୧୬ | ୧୮ | ୧ | ୨୨ | ୬.୦ | ୨୧ | ୦.୯ |
| ଚୀନ | ୨୨ | ୧୩ | ୧ | ୫୯ | ୩.୫ | ୧୧ | ୦.୫ |
| ଉପ ସାହାରା ମଣ୍ଡଳୀୟ ଆଫ୍ରିକା ସ୍ୱାସ୍ଥ୍ୟ ପରିସଂଖ୍ୟାନ ଭିତ୍ତିକ | ୧୦ | ୧୨ | ୧ | ୫୫ | ୪.୫ | ୨୪ | ୧.୦ |
| ବିକାଶଶୀଳ ରାଷ୍ଟ୍ର ସମୂହ | ୭୮ | ୧୭୦ | ୧୦ | ୫୦ | ୪.୭ | ୪୧ | ୧.୭ |
| ବିଶ୍ୱ | ୧୦୦ | ୧୭୦୨ | ୧୦୦ | ୬୦ | ୮.୦ | ୩୨୯ | ୧୩.୭ |

ଉଦ୍ଧୃତ : ବିଶ୍ୱ ବିକାଶ ରିପୋର୍ଟ ୧୯୯୩, ପୃଷ୍ଠା - ୫୨

ପ୍ରଶ୍ନ-୩ : ଭୁଲ୍

ଯୁଦ୍ଧ ନଥାଇ ମଧ୍ୟ ଭାରତର ପ୍ରତିରକ୍ଷା ବାବଦକୁ ଖର୍ଚ୍ଚର ଅନୁପାତ ତା'ର ସ୍ୱାସ୍ଥ୍ୟ ଏବଂ ଶିକ୍ଷା ବାବଦକୁ ଥିବା ଖର୍ଚ୍ଚ ଠାରୁ ଯଥେଷ୍ଟ ଅଧିକ । ପ୍ରତିରକ୍ଷା ବାବଦକୁ ଆମେ ବଜେଟ୍‌ର ୧୫% ଖର୍ଚ୍ଚ କରୁଥିବାବେଳେ ସ୍ୱାସ୍ଥ୍ୟ ଓ ଶିକ୍ଷା ପାଇଁ ମାତ୍ର ୩% ରୁ ୫% ଖର୍ଚ୍ଚ କରୁଅଛୁ ।

ହଁ, ଯଦି ପଡୋଶୀ ସହିତ ଆମର ଉତ୍ତମ ସମ୍ପର୍କ ରହିବ, ତେବେ ଆମ ଲୋକମାନଙ୍କର ସ୍ୱାସ୍ଥ୍ୟ ଅବସ୍ଥାରେ ଯଥେଷ୍ଟ ଉନ୍ନତି ଅଣାଯାଇ ପାରିବ ।

ପ୍ରଶ୍ନ-୪: ଠିକ୍

ନଗଦ ଅର୍ଥରେ ବିଚାର କଲେ ଏଥିରେ ବୃଦ୍ଧି ଘଟିଛି । ଯଦି ଆମେ ମୁଦ୍ରାସ୍ଫୀତି ସହ ତାଳ ଦେଇ ବିଚାର କରିବା ତେବେ ଏହି ବୃଦ୍ଧି ଯଥେଷ୍ଟ ନୁହେଁ । ଯଦି ଆମେ ବ୍ୟୟକୁ ସମୁଦାୟ ସ୍ୱାସ୍ଥ୍ୟ ବ୍ୟୟର ଏକ ପ୍ରତିଶତ ଭାବେ ବିଚାର କରିବା ତେବେ ସ୍ୱାସ୍ଥ୍ୟ ପାଇଁ କରାଯାଉଥିବା ପ୍ରକୃତ ଖର୍ଚ୍ଚରେ ହ୍ରାସ ଘଟିଛି, ଯଦିଓ ପରିବାର ନିୟୋଜନର ଖର୍ଚ୍ଚସହ ମିଶି ଏହା ଶତକଡା ୩ ରେ ରହୁଛି । ମାତ୍ର ୮୦ ଦଶକରେ ପାନୀୟ ଜଳ ନିମିତ୍ତ ଖର୍ଚ୍ଚରେ ସାମାନ୍ୟ ବୃଦ୍ଧି ପରିଲକ୍ଷିତ ହୋଇଥିଲା । ଏହା ନିମ୍ନୋକ୍ତ ଟେବୁଲ୍‌ରେ ଦର୍ଶାଯାଇଛି ।

ଟେବୁଲ୍ - ୨ ପଞ୍ଚ ବାର୍ଷିକ ଯୋଜନା ମାନଙ୍କରେ ସ୍ୱାସ୍ଥ୍ୟ ବାବଦକୁ ବ୍ୟୟ ।

| (୧) ଯୋଜନା ସମୟ | (୨) ସମୁଦାୟ ଯୋଜନାରେ ବ୍ୟୟ ଅଟକଳ | (୩) ସ୍ୱାସ୍ଥ୍ୟ | (୪) ପରିବାର କଲ୍ୟାଣ (୩+୪) | (୫) ଅଧି ସାମୁଦାୟ | (୬) ଜଳଯୋଗାଣ ଏବଂ ପରିମଳ | (୫+୬) ସମୁଦାୟ |
|---|---|---|---|---|---|---|
| ୧ ୫୧-୫୬ | ୧୯୬୦୦ (୧୦୦) | ୬୫୨ (୩.୩) | ୧ (୦.୦) | ୬୫୩ (୩.୩) | ୧୧୦ (୦.୬) | ୭୬୩ (୩.୯) |
| ୨ ୫୬-୬୧ | ୪୬୭୨୦ (୧୦୦) | ୧୪୦୮ (୩.୦) | ୫୦ (୦.୧) | ୧୪୫୮ (୩.୧) | ୭୪୦ (୧.୬) | ୨୧୯୮ (୪.୭) |
| ୩ ୬୧-୬୬ | ୮୫୭୬୫ (୧୦୦) | ୨୨୫୯ (୨.୬) | ୨୪୯ (୦.୩) | ୨୫୦୮ (୨.୯) | ୧୦୫୭ (୧.୨) | ୩୫୬୫ (୪.୧) |
| ୪ ୬୯-୭୪ | ୧୫୭୭୮୮ (୧୦୦) | ୩୩୫୫ (୨.୧) | ୨୭୦୮ (୨.୧) | ୬୧୩୫ (୪.୨) | ୪୫୮୯ (୨.୯) | ୧୦୭୨୪ (୬.୮) |
| ୫ ୭୪-୭୯ | ୩୯୪୨୬୨ (୧୦୦) | ୭୬୦୮ (୧.୯) | ୪୯୧୮ (୧.୩) | ୧୨୫୨୬ (୩.୨) | ୧୦୯୧୬ (୨.୮) | ୨୩୪୪୨ (୬.୦) |
| ୬ ୮୦-୮୫ | ୧୦୯୨୯୧୭(୧୦୦) | ୨୦୨୫୨ (୧.୮) | ୧୩୮୭୦ (୧.୩) | ୩୪୧୨୨ (୩.୧) | ୩୯୭୭୬ (୩.୬) | ୭୩୮୯୮ (୬.୭) |
| ୭ ୮୫-୯୦ | ୨୨୦୨୧୬୩(୧୦୦) | ୩୬୯୪୧ (୧.୭) | ୨୯୫୮୧ (୧.୩) | ୬୬୫୨୨ (୩.୦) | ୭୧୨୨୭ (୩.୨) | ୧୩୭୭୪୯ (୬.୨) |
| ୮ ୯୨-୯୭ | ୪୩୪୧୦୦ (୧୦୦) | ୭୫୭୫୯ (୧.୭) | ୬୫୦୦୦ (୧.୫) | ୧୪୦୭୫୯ (୩.୨) | ୧୬୭୧୧୦ (୩.୮) | ୩୦୭୮୬୯ (୭.୦) |

ବି :ଦ୍ର - ବନ୍ଧନୀ ମଧ୍ୟରେ ଥିବା ଅଙ୍କ ଗୁଡିକ ପ୍ରତିଶତ ସୁଚାଏ ।

ଉଦ୍ଧୃତ :- ଭାରତରେ ଅର୍ଥନୀତିକ ସଂସ୍କାରର ସାମାଜିକ ପ୍ରଭାବ (E.P.W.)

ଭଲ୍ୟୁମ ୩୫ ନମ୍ବର - ୧୦, ମାର୍ଚ୍ଚ ୪ ରୁ ୧୦ ପୃଷ୍ଠା ୮୪୧, ଭାରତ ସରକାରଙ୍କ ରିପୋର୍ଟ ଉପରେ ପର୍ଯ୍ୟବେକ୍ଷିତ ।

ନବେ ଦଶକର ଆର୍ଥିକ ସଂସ୍କାର ସମୟରେ ସ୍ୱାସ୍ଥ୍ୟପାଇଁ ଶତକଡା ବ୍ୟୟ ହାର ସ୍ଥିରଥିଲା । ମାତ୍ର ଅନ୍ୟାନ୍ୟ ବିକାଶ ମୂଳକ ବ୍ୟୟରେ ଭଟ୍ଟା ପଡିବାରୁ ମୁଦ୍ରାସ୍ଫୀତିକୁ ଖାପ ଖୁଆଇବାକୁ ଯାଇ ବାସ୍ତବ ଖର୍ଚ୍ଚରେ ତୀକ୍ଷ୍ଣ ହ୍ରାସ ପରିଲକ୍ଷିତ ହୋଇଥିଲା । ଏହା ତଳେ ଦର୍ଶାଯାଇଛି।

ଟେବୁଲ- ୩ ନବେ ଦଶକରେ ବାର୍ଷିକ ଯୋଜନାରେ ସ୍ୱାସ୍ଥ୍ୟପାଇଁ ପ୍ରକୃତ ଖର୍ଚ୍ଚ / ଅଂଶଧନ

୧୯୯୦-୯୧ର ସ୍ଥିର ମୂଲ୍ୟରେ (ଏକକ କୋଟି ଟଙ୍କାରେ ହିସାବ କରାଯାଇଛି)

| ସମୁଦାୟ ଉନ୍ନୟନ ମୂଳକ ବ୍ୟୟ | | | | ସ୍ୱାସ୍ଥ୍ୟ ବ୍ୟୟ | | |
|---|---|---|---|---|---|---|
| ମସିହା | କେନ୍ଦ୍ର + ରାଜ୍ୟ | କେନ୍ଦ୍ର | ରାଜ୍ୟ | କେନ୍ଦ୍ର + ରାଜ୍ୟ | କେନ୍ଦ୍ର | ରାଜ୍ୟ |
| ୯୦-୯୧ | ୪୦୦୬୨ | ୨୩୫୧୧ | ୧୬୫୫୧ | ୬୫୯ (୧.୬୫) | ୧୮୯ (୦.୮) | ୪୭୧ (୨.୮୪) |
| ୯୧-୯୨ | ୩୯୦୭୫ | ୨୨୮୩୯ | ୧୬୨୩୬ | ୬୨୯ (୧.୬୧) | ୧୮୩ (୦.୮) | ୪୪୭ (୨.୭୫) |
| ୯୨-୯୩ | ୩୯୯୪୬ | ୨୩୯୫୮ | ୧୫୯୮୮ | ୬୬୫ (୧.୬୭) | ୨୧୦ (୦.୮୮) | ୪୫୫ (୨.୮୫) |
| ୯୩-୯୪ | ୪୪୫୭୩ | ୨୭୯୪୨ | ୧୬୬୩୧ | ୬୫୮ (୧.୪୮) | ୨୦୩ (୦.୭୩) | ୪୫୪ (୨.୭୩) |
| ୯୪-୯୫ | ୪୮୪୮୨ | ୩୧୧୮୬ | ୧୭୨୯୬ | ୭୮୦ (୧.୬୧) | ୨୭୩ (୦.୮୮) | ୫୦୭ (୨.୯୩) |
| ୯୫-୯୬ | ୫୪୬୬୨ | ୩୩୫୧୮ | ୨୧୧୪୪ | ୯୨୪ (୧.୬୯) | ୨୮୫ (୦.୮୫) | ୬୩୯ (୩.୦୨) |

ପ୍ରଶ୍ନ-୫: ଭୁଲ୍

ସରକାରୀ ସ୍ତରରେ ସ୍ୱାସ୍ଥ୍ୟ ପାଇଁ ଗ୍ରାମାଞ୍ଚଳ ସକାଶେ ହେଉଥିବା ବ୍ୟୟ ୪୬.୫% ଥିବାବେଳେ ସହରାଞ୍ଚଳପାଇଁ ଏହା ୫୩.୫% । ଏହି ୫୩.୫% ସମୁଦାୟ ଜନସଂଖ୍ୟାର କେବଳ ୨୩% ପାଇଁ ଉଦ୍ଦିଷ୍ଟ (Source - State of the Nation's Health Report of the independent commission Published by VHAI) । ଅନ୍ୟ ଅଟକଳ ଅନୁସାରେ ଗ୍ରାମାଞ୍ଚଳପାଇଁ ହେଉଥିବା ବ୍ୟୟ ଆହୁରି କମ୍ । କେବଳ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ଓ ଏଥି ନିମନ୍ତେ ହେଉଥିବା ସାମାନ୍ୟ ଖର୍ଚ୍ଚ ବ୍ୟତୀତ ଗ୍ରାମାଞ୍ଚଳପାଇଁ ଆଉ ଅଧିକ ବ୍ୟୟ କରାଯାଏ ନାହିଁ । ସମସ୍ତ ଭେଷଜ ମହାବିଦ୍ୟାଳୟ, ଡାକ୍ତରଖାନା ଓ ସ୍ୱାସ୍ଥ୍ୟ ଗବେଷଣା କେନ୍ଦ୍ରଗୁଡିକ ସହରାଞ୍ଚଳରେ ଅବସ୍ଥିତ । ଅବଶ୍ୟ ସହରରେ ଥିବା କେତେକ ଡାକ୍ତରଖାନା ଗ୍ରାମାଞ୍ଚଳର ଆବଶ୍ୟକତାକୁ ପୁରଣ କରିଥାନ୍ତି । କାରଣ ସେସବୁ ଗ୍ରାମାଞ୍ଚଳରେ ଆଉ କୌଣସି ସୁବିଧା ନଥାଏ ।

ପ୍ରଶ୍ନ-୬ : ଠିକ୍

ଅପରପକ୍ଷେ, ସ୍ୱାସ୍ଥ୍ୟସେବା ଦୃଷ୍ଟିରୁ ନିମ୍ନସ୍ଥାନ ଅଧିକାର କରିଥିବା ରାଜ୍ୟଗୁଡିକ ସେମାନଙ୍କର ବଜେଟ୍‌ରେ ମୁଣ୍ଡ ପିଛା ସ୍ୱାସ୍ଥ୍ୟ ଖର୍ଚ୍ଚ ବହୁତ କମ୍ ରଖିଥାନ୍ତି । ଏମାନେ ଆର୍ଥିକ ଦୃଷ୍ଟିରୁ ଦୁର୍ବଳ ଅଟନ୍ତି । ତେଣୁ ସ୍ୱାସ୍ଥ୍ୟ ପାଇଁ ବ୍ୟୟ କରିବାକୁ ସେମାନଙ୍କ ପାଖରେ ସମ୍ବଳ ନଥାଏ । ଏହି ପରି କ୍ରମାନ୍ୱୟରେ ୬ଟି ରାଜ୍ୟ ଯଥା : ମଧ୍

ପ୍ରଦେଶ, ଓଡ଼ିଶା, ଉତ୍ତର ପ୍ରଦେଶ, ରାଜସ୍ଥାନ, ଆସାମ୍, ବିହାରରେ ୫ ବର୍ଷରୁ କମ୍ ବୟସର ଶିଶୁ ମୃତ୍ୟୁହାର ଅଧିକ ଅଟେ । ଡି.ପି.ଟି. ଟିକାଦାନରେ ସବୁଠାରୁ କମ୍ ଧାର୍ଯ୍ୟ ଲକ୍ଷ୍ୟ ହାସଲ କରିଥିବା ରାଜ୍ୟ ଗୁଡିକର କ୍ରମ ହେଲା ବିହାର, ଆସାମ, ମଧ୍ୟପ୍ରଦେଶ, ଉତ୍ତର ପ୍ରଦେଶ ଓ ଓଡ଼ିଶା । ତାଲିମ ପାଇ ନଥିବା ଧାଈଙ୍କ ଦ୍ୱାରା ଶିଶୁ ଜନ୍ମ କରାହେଉଥିବା କାର୍ଯ୍ୟ ଆସାମ, ବିହାର, ମଧ୍ୟପ୍ରଦେଶ, ଓଡ଼ିଶା, ରାଜସ୍ଥାନ, ଉତ୍ତର ପ୍ରଦେଶ ଆଦି ୬ ଟି ରାଜ୍ୟରେ ସବୁଠାରୁ ବେଶି । ବିହାର, ଆସାମ, ରାଜସ୍ଥାନ ଓ ମଧ୍ୟପ୍ରଦେଶରେ ଦାରିଦ୍ର୍ୟ ସ୍ତର ମଧ୍ୟ ସବୁଠାରୁ ଅଧିକ ।

ପ୍ରଶ୍ନ-୭ : ଠିକ୍

ପରିବାର ନିୟୋଜନ ଯୋଜନା ପାଇଁ ହେଉଥିବା ଖର୍ଚ୍ଚ ସମୁଦାୟ ସ୍ୱାସ୍ଥ୍ୟ ବ୍ୟୟର ପ୍ରାୟ ଅର୍ଦ୍ଧେକ । ( ୪ ନମ୍ବର ପ୍ରଶ୍ନର ଉତ୍ତର ପାଇଁ ଦିଆଯାଇଥିବା ଟେବୁଲଟିକୁ ଦେଖ) ।

ପ୍ରଶ୍ନ-୮: ଭୁଲ୍

ସର୍ବାଧିକ ଖର୍ଚ୍ଚ (ଏଥିରେ ହିତାଧିକାରୀଙ୍କୁ ଦିଆଯାଇଥିବା ଅର୍ଥ ଅନ୍ତର୍ଭୁକ୍ତ) । ପରିବାର ନିୟୋଜନରେ ହୋଇଥାଏ । ସମୁଦାୟ ବ୍ୟୟର ମାତ୍ର ୧୩.୧% ଭାଗ ମା ଓ ଶିଶୁ ସୁରକ୍ଷା କ୍ଷେତ୍ରରେ ବ୍ୟୟ ହୋଇଥାଏ । ପରିବାର ନିୟୋଜନ ପାଇଁ ହେଉଥିବା ବ୍ୟୟ ସମୁଦାୟ ବ୍ୟୟର ୭୩.୩% ଅଟେ ।

ପ୍ରଶ୍ନ-୯: ଭୁଲ୍

ବାସ୍ତବରେ ଡାକ୍ତରଖାନାରେ ଅନ୍ତର୍ନିବାସୀ ରୋଗୀଙ୍କପାଇଁ ପକେଟ୍ ଖର୍ଚ୍ଚ ୪ ଗୁଣ ବଢିଗଲାଣି । ୧୯୮୬ ମସିହାରେ ସ୍ଥିର ହୋଇଥିବା ମୂଲ୍ୟ ଅନ୍ତର୍ନିବାସୀ ରୋଗୀଙ୍କ ପାଇଁ ବାହ୍ୟ ପକେଟ ଖର୍ଚ୍ଚ ୧୯୯୫ -୯୬ ମସିହାରେ ୧୪୦୪ ଟଙ୍କାକୁ ବୃଦ୍ଧି ପାଇଲା (ଏହା ୧୯୮୬-୮୭ରେ ୮୮୬ ଟଙ୍କା ଥିଲା) । ଯେହେତୁ ସ୍ୱଳ୍ପ ଆୟକାରୀ ମାନଙ୍କ ଆୟ, ମୁଦ୍ରାସ୍ଫୀତି ଯୋଗୁଁ ସମାନ ଭାବରେ ବୃଦ୍ଧି ହେଉନଥିଲା, ସେମାନଙ୍କ ପାଇଁ ସ୍ୱାସ୍ଥ୍ୟ ସୁରକ୍ଷା ବ୍ୟୟ ବଢିଯାଉଥିଲା । ଅତି ରକ୍ଷଣଶୀଳ ଅଟକଳ ଅନୁସାରେ ସ୍ୱାସ୍ଥ୍ୟ ବ୍ୟୟ ସମୁଦାୟ ପରିବାରର ବ୍ୟୟର ୨୦% ଅଟେ । ଜଗତିକରଣର ଏହା ଏକ ମୁଖ୍ୟ ପ୍ରଭାବ ଅଟେ ।

ପ୍ରଶ୍ନ-୧୦: ଠିକ୍

ଅନ୍ତର୍ନିବାସୀ ରୋଗୀଙ୍କର ସ୍ୱାସ୍ଥ୍ୟସେବାପାଇଁ ୪୦% ରୁ ୫୫% ନିର୍ଭରଶୀଳତା ବଢିଥିବା ବେଳେ ବହିର୍ବିଭାଗ ସ୍ୱାସ୍ଥ୍ୟସେବା ପାଇଁ ୭୫% ରୁ ୮୦% ନିର୍ଭରଶୀଳାତା ବଢିଯାଇଛି ।

ପ୍ରଶ୍ନ-୧୧: ଭୁଲ

ପାରିବାରିକ ସ୍ୱାସ୍ଥ୍ୟ ବ୍ୟୟର ହାରାହାରି ୭୧% ଔଷଧ, ଡାକ୍ତରୀ ପାଉଣା ଓ ରୋଗର ନିଦାନ ନିରୂପଣ ପାଇଁ ଖର୍ଚ୍ଚ ହୁଏ । ଯିବା ଆସିବା ପାଇଁ ୮% ଓ ଅସ୍ତ୍ରୋପଚାର ପାଇଁ ୧୩% ବ୍ୟୟ

ହୁଏ । ପୂଜା ଆଦି ପାଇଁ ୧% ରୁ କମ୍ ଖର୍ଚ୍ଚ ହୋଇଥାଏ । ଔଷଧ ଓ ନିଦାନ ନିରୂପଣ ପାଇଁ ବ୍ୟୟ ହେଉଥିବା ପାରିବାରିକ ଖର୍ଚ୍ଚର ମୁଖ୍ୟ ଭାଗ ଅଦରକାରୀ ଓ କ୍ଷତିକାରକ ଔଷଧ କିଣାରେ ଖର୍ଚ୍ଚ ହୁଏ । ଏହି ଖର୍ଚ୍ଚର ପରିମାଣ ୬୦% ରୁ ୯୦% ପର୍ଯ୍ୟନ୍ତ ହୋଇଥାଏ । ଅନେକ ରୋଗ ବିନା ଔଷଧରେ ବା ଘରର ପାରମ୍ପରିକ ଔଷଧରେ ଭଲ ହୋଇଯିବ, ଯଥା : କାଶ ଓ କଫ ପାଇଁ ଘରେ ବ୍ୟବହାର କରାଯାଇଥିବା ତୁଟୁକା ଔଷଧ । ମାତ୍ର ଏଥିପାଇଁ ମଧ ଔଷଧ କିଣି ଲୋକମାନେ ଖର୍ଚ୍ଚାନ୍ତ ହେଉଛନ୍ତି । ସବୁଠାରୁ ସାଧାରଣ ଉଦାହରଣ ହେଲା ତରଳ ଝାଡାର ଚିକିତ୍ସା କରିବା । ଏଥି ନିମନ୍ତେ ୨୦ରୁ ୫୦ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ କରିବାକୁ ପଡିଥାଏ । ମାତ୍ର ଡାକ୍ତରଖାନାରେ ରୋଗୀକୁ ଚିକିତ୍ସା ନକରି ମଧ ସ୍ୱାସ୍ଥ୍ୟକର୍ମୀଙ୍କ ସାହାଯ୍ୟରେ ବିନା ଖର୍ଚ୍ଚରେ ଏହି ରୋଗର ଚିକିତ୍ସା କରାଯାଇପାରିବ ।

ପ୍ରଶ୍ନ-୧୨ : ଠିକ୍

ବିଶ୍ୱବ୍ୟାଙ୍କ ଅଟକଳ ଅନୁଯାୟୀ ଭାରତରେ ସମୁଦାୟ ସ୍ୱାସ୍ଥ୍ୟକ୍ଷେତ୍ରପାଇଁ ବୈଦେଶିକ ଋଣ ଓ ସାହାଯ୍ୟ, ସମୁଦାୟ ସ୍ୱାସ୍ଥ୍ୟ ବଜେଟ୍‌ର ମାତ୍ର ୯% ଅଟେ ।

ପ୍ରଶ୍ନ-୧୩ : ଭୁଲ୍

ପ୍ରଥମତଃ ଆମଦେଶରୁ ଅନ୍ୟଦେଶକୁ ଲାଭଆକାରରେ ଯାଉଥିବା ଅର୍ଥ ଓ ଦ୍ରବ୍ୟ ତୁଳନାରେ ଆମେ ପାଉଥିବା ଋଣ ଓ ସାହାଯ୍ୟ ନଗଣ୍ୟ ଅଟେ ।

ଦ୍ୱିତୀୟତଃ ଯେତିକି ପରିମାଣରେ ଆମେ ସାହାଯ୍ୟ ଓ ଋଣ ପାଉ ତାହାର ଏକ ବଡ ଭାଗ ପୁନଶ୍ଚ ସେହି ଦେଶକୁ ଆବଶ୍ୟକ ସାମଗ୍ରୀ ଓ ଯନ୍ତ୍ରପାତି କିଣିବା ମାଧ୍ୟମରେ ଏବଂ ପରାମର୍ଶ ଦେୟ ଆକାରରେ ଫେରିଯାଏ ।

ତୃତୀୟତଃ ଆମେ ପାଉଥିବା ଋଣ ଓ ସାହାଯ୍ୟ ପାଇଁ ଆମକୁ ସୁଧ ଦେବାକୁ ପଡେ । ସେମାନେ ଆମକୁ ସେମାନଙ୍କର ନୀତି ଅନୁସରଣ କରିବାକୁ ପ୍ରବର୍ତ୍ତାନ୍ତି ଓ ଆମ ସାର୍ବଭୌମତ୍ୱରୁ କିଛି ଅଂଶ ସମର୍ପଣ କରିବାକୁ ବାଧ୍ୟ କରାନ୍ତି । ଏହାଦ୍ୱାରା ସେମାନେ ସେମାନଙ୍କର ଲାଭ ଉଠାଇ ଥାନ୍ତି । ଏହା ବର୍ତ୍ତମାନ ପର୍ଯ୍ୟନ୍ତ ସୁସ୍ପଷ୍ଟ ନୁହେଁ ଯେ ଏସବୁସତ୍ତ୍ୱେ ସେମାନଙ୍କୁ କାହିଁକି ଏତେ ଅଗ୍ରାଧିକାର ଦିଆ ଯାଉଅଛି ! ଏହି ସମ୍ବଳ ଆମ ଦେଶରେ ମଧ୍ୟ ସୃଷ୍ଟି କରିହେବ । ପୁନଶ୍ଚ ଆମେ ଋଣ ପରିଶୋଧର ଗୁରୁ ବୋଝକୁ ବହନ କରୁ, ଯାହାକି ଆମକୁ ଅଧିକ ନତମସ୍ତକ କରିଦିଏ । ଯଦି ଆମେ ସେହି କାର୍ଯ୍ୟପାଇଁ ବୈଦେଶିକ ସାହାଯ୍ୟ ନ ନେଇ ସ୍ଥାନୀୟ ଗୋଷ୍ଠୀ ମାଧ୍ୟମରେ ଅନ୍ୟ ଉପାୟ ଅବଲମ୍ବନ କରନ୍ତେ, ତେବେ ଆମେ କମ୍ ଖର୍ଚ୍ଚରେ ଯଥେଷ୍ଟ କାର୍ଯ୍ୟ ସମ୍ପାଦନ କରିପାରିଥାନ୍ତେ । ଏ କଥା ସମ୍ଭବ ହୋଇ ପାରୁ ନାହିଁ କାରଣ ଆମେ ସ୍ଥାନୀୟ ଗୋଷ୍ଠୀକୁ କ୍ଷମତାଶାଳୀ କରାଇବାକୁ ଅନିଚ୍ଛୁକ ଏବଂ ସେମାନଙ୍କ ଋଣ ଓ ସର୍ତ୍ତାବଳୀ ଆଗରେ ମୁଣ୍ଡ ନୁଆଁଇ ଦେଉ ।

ଏସବୁ ଅବୁଝା ଭାଷାକୁ

# ତୁମେ ଜାଣିଛ କି ?

## ୧) ଉପନିବେଶ ବାଦ

ଏକ ରାଜନୈତିକ ବ୍ୟବସ୍ଥା ଯେଉଁଥିରେ ମୁଷ୍ଟିମେୟ କେତେଟି ଦେଶ (ମୁଖ୍ୟତଃ ୟୁରୋପ, ଆମେରିକା, ଜାପାନ ଆଦି ଧନୀଦେଶଗୁଡିକ) ବାକି ଦେଶମାନଙ୍କ ଉପରେ ଏକଚାଟିଆ ପ୍ରଭାବ ବିସ୍ତାର କରି ସେମାନଙ୍କର କଞ୍ଚାମାଲ, ଶ୍ରମ ଏବଂ ବଜାରକୁ ନିଜର ଅର୍ଥନୈତିକ ଅଭିବୃଦ୍ଧି ପାଇଁ ବ୍ୟବହାର କଲେ । ଏହିପରି ଭାବରେ ସେମାନେ ଦେଶଗୁଡିକୁ ଦାରିଦ୍ର୍ୟ ଭିତରକୁ ଠେଲି ଦେଲେ ।

## ୨) ସାମ୍ରାଜ୍ୟବାଦ

ଏହା ହେଉଛି ପୁଞ୍ଜିବାଦର ନୂତନ ରୂପ ଯାହାକି ଏକଚାଟିଆ ପ୍ରଭୂତ୍ୱର ଏକ ବିସ୍ତାରିତ ସ୍ୱରୂପ । ବର୍ତ୍ତମାନ ପୃଥିବୀ ଏହିଭଳି ପରିସ୍ଥିତିରେ ପ୍ରଭାବ ବିସ୍ତାର ପାଇଁ ବିଭିନ୍ନ ଦଳରେ ବିଭକ୍ତ ହୋଇଯାଛି ଓ ପୁଞ୍ଜି ରପ୍ତାନୀ ଏହାର ମୁଖ୍ୟ ଉଦ୍ଦେଶ୍ୟ ଓ କାର୍ଯ୍ୟ ହୋଇଉଠିଛି ।

## ୩) ଖାଦ୍ୟ ନିରପତ୍ତା

ଏହା ହେଉଛି ଏଭଳି ଏକ ନୀତି ଯାହାଦ୍ୱାରା ଗୋଟିଏ ଦେଶର ଆବଶ୍ୟକ ଖାଦ୍ୟ ସେହି ଦେଶ ମଧ୍ୟରେ ଉତ୍ପାଦିତ ହୋଇ ସଂରକ୍ଷିତ ହୋଇଥାଏ । ଏହାଦ୍ୱାରା ପ୍ରାକୃତିକ ତଥା ମନୁଷ୍ୟକୃତ ବିପର୍ଯ୍ୟୟଗୁଡିକୁ ମୁକାବିଲା କରିହୁଏ । ଏହି ଖାଦ୍ୟ ନିରାପତ୍ତାକୁ ବଜାୟ ରଖିଲେ ଆମ ଦେଶର ସାର୍ବଭୌମତା ମଧ୍ୟ ଅକ୍ଷୁର୍ଣ୍ଣ ରହିବ ।

କାରଣ ଦୁର୍ଭିକ୍ଷ ସମୟରେ ଅନ୍ୟ ଦେଶରୁ ଖାଦ୍ୟ ଆଣିବାକୁ ହେଲେ ସେମାନଙ୍କର ନିଷ୍ଠୁର ନିୟମ ଓ ନିର୍ଦ୍ଦେଶନାମାକୁ ମାନିନେବାପାଇଁ ଆମକୁ ବାଧ୍ୟ ହେବାକୁ ପଡିବ ।

୪) ମୋଟ ଘରୋଇ ଉତ୍ପାଦନ

ଏହା ଦେଶର ସଂପତ୍ତି ଆକଳନ କରିବାପାଇଁ ଏକ ମୁଖ୍ୟ ପନ୍ଥା । ସମସ୍ତଙ୍କ ଆୟକୁ ଏକାଠି ହିସାବ କରି ଏହା ସ୍ଥିର କରାଯାଏ । ସେହିଭଳି ଏହା ଦେଶର ସମସ୍ତ ଉତ୍ପାଦନ ଓ ସେବାପାଇଁ ଗୋଟିଏ ବର୍ଷର ମୂଲ୍ୟ ଅଟେ । ଏଥି ସହିତ ଜଡିତ ସମସ୍ୟାଟି ହେଉଛି, ସେତେବେଳେ ଅଳ୍ପ କିଛି ଲୋକଙ୍କର ଆୟ ବା ଉତ୍ପାଦନରେ ବହୁତ ବୃଦ୍ଧି ହୁଏ, ଯେତେବେଳେ ଅଧିକାଂଶଙ୍କ ଆୟରେ ଭଟ୍ଟା ପଡେ । ତେବେ ଏହା ଦ୍ୱାରା ଦେଶର ମୋଟ ଘରୋଇ ଉତ୍ପାଦନ ବଢିପାରିବ କି ! ଏହି ତଥ୍ୟଟି ଅସମାନତାକୁ ଗୁପ୍ତ ରଖେ ।

୫) ଜଗତିକରଣ

ସମଗ୍ର ପୃଥିବୀର ସମୃଦ୍ଧି ପାଇଁ ଏହା ଏକ କାଳ । ସମଗ୍ର ପୃଥିବୀକୁ ଗୋଟିଏ ବଜାରରେ ପରିଣତ କରିବାକୁ କେତେ ଗୁଡିଏ ଅର୍ଥନୈତିକ ତଥା ରାଜନୈତିକ ନୀତିକୁ ଏହା ବୁଝାଏ ଯହାକି ସମସ୍ତ ଗତିବିଧିକୁ ପାରହୋଇ ସେମାନଙ୍କ ପାଇଁ ଜାତୀୟ ଏକ ବିଶ୍ୱ ବଜାର ସୃଷ୍ଟି କରିଥାଏ । ବିଶେଷତଃ ବହୁଦେଶୀୟ କମ୍ପାନୀ ତଥା ବଡ, ଧନୀ ଓ ଅର୍ଥଶାଳୀ କମ୍ପାନୀମାନେ ଏହାକୁ ସ୍ୱାଗତ କରିଥାନ୍ତି । ଜାତୀୟ ପ୍ରତିବନ୍ଧକକୁ ଉଠାଇ ଦେବା ଅର୍ଥ, ସେମାନଙ୍କ ପାଇଁ ଏକ ବିରାଟ ବଜାର ସୃଷ୍ଟି କରିବା । ଅଧିକାଂଶ ଦେଶରେ କ୍ଷୁଦ୍ର ଶିଳ୍ପ ତଥା

ଉତ୍ପାଦନକାରୀମାନେ ଏହାକୁ ବିରୋଧ କରନ୍ତି । ସେମାନେ ଦାବି କରନ୍ତି ଯେ ମୁକ୍ତ ବଜାରରେ ଧନୀମାନେ ଯାହା ଚାହାଁନ୍ତି ତାହା କରିପାରନ୍ତି । ମାତ୍ର ଗରିବମାନେ ସେଥିରୁ ବଞ୍ଚିତ ହୁଅନ୍ତି । ଜଗତିକରଣ କେବଳ ବାଣିଜ୍ୟ ପ୍ରତିବନ୍ଧକକୁ ଏଡାଇ ଏକ ବିଶ୍ୱବଜାର ସୃଷ୍ଟି କରେ ତା ନୁହେଁ ବରଂ ଏହା ଏକ ସମଜାତୀୟ ଜାଗତିକ ସଂସ୍କୃତି ସୃଷ୍ଟିକରେ । ପ୍ରଯୁକ୍ତି ବିଦ୍ୟାର ବିକଶିତ ଜ୍ଞାନ, ସୂଚନାର ସୃଷ୍ଟି ଓ ନିୟନ୍ତ୍ରଣ, ସାମାଜିକ ଅନୁଷ୍ଠାନ ଗୁଡିକର ଗଠନ ପ୍ରଣାଳୀକୁ ଏହା ସୁଗମ କରି ଅଳ୍ପ କେତେକ ବହୁ ଦେଶୀୟ କମ୍ପାନୀର ପ୍ରଭାବ ବିସ୍ତାର ପାଇଁ ସୁବିଧା କରିଥାଏ ।

## ୬) ମୁଦ୍ରାସ୍ଫୀତି

ଏହା ହେଉଛି ଏକ ଅର୍ଥନୈତିକ ଚିନ୍ତାଧାରା ଯେଉଁଥିରେ କି କାଗଜ ଟଙ୍କାର ଅବମୂଲ୍ୟାୟନ ହୁଏ ତେଣୁ ପ୍ରତ୍ୟେକ ଜିନିଷର ଦରବୃଦ୍ଧି ଘଟେ । ମୁଦ୍ରାସ୍ଫୀତି ଶ୍ରମିକଠାରୁ ତାର ମଜୁରୀକୁ ଚୋରାଇ ନିଏ । କାରଣ ମୁଦ୍ରାସ୍ଫୀତି ଦ୍ୱାରା ତାର ମଜୁରୀର ମୂଲ୍ୟ ଦିନକୁ ଦିନ କମିଯାଏ । ମାତ୍ର ସମ୍ପତ୍ତି ମାଲିକମାନଙ୍କ କ୍ଷେତ୍ରରେ ପ୍ରକୃତ ମୂଲ୍ୟରେ କୌଣସି ପରିବର୍ତ୍ତନ ହୁଏ ନାହିଁ । ଟଙ୍କା ହିସାବରେ ସେମାନଙ୍କର ସଂପତ୍ତିର ମୂଲ୍ୟ ବଢିଯାଏ ।

## ୭) ଅନ୍ତଃରାଷ୍ଟ୍ରୀୟ ମୁଦ୍ରା କୋଷ

ଏହା ଏକ ଅନ୍ତଃରାଷ୍ଟ୍ରୀୟ ଆର୍ଥିକ ଅନୁଷ୍ଠାନ ଯାହାକି ଅନ୍ୟାନ୍ୟ ଆର୍ଥିକ ଅନୁଷ୍ଠାନକୁ ନିୟନ୍ତ୍ରଣରେ ରଖିବାପାଇଁ ଶକ୍ତିଶାଳୀ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କ ଦ୍ୱାରା ସୃଷ୍ଟି ହୋଇଛି । ଏହା ବିକାଶଶୀଳ ରାଷ୍ଟ୍ରମାନଙ୍କୁ

ଋଣ ପ୍ରଦାନ କରେ । ଯେତେବେଳେ ଋଣ ନେଇଥିବା ରାଷ୍ଟ୍ରଗୁଡିକ ଋଣ ପରିଶୋଧ କରିବାରେ ଅକ୍ଷମ ହୁଅନ୍ତି, ସେତେବେଳେ ଏହା ସେମାନଙ୍କୁ ଧନୀ ରାଷ୍ଟ୍ରଗୁଡିକର ସ୍ୱାର୍ଥ ସକାଶେ ଆବଶ୍ୟକ ନୀତି ପ୍ରଣୟନ କରନ୍ତି ।

୮) ଉଦାରୀକରଣ

ଏହା ଏକ ରାଜନୈତିକ ବ୍ୟବସ୍ଥା ଯେଉଁଥିରେ ଉତ୍ପାଦନ ଏବଂ ବାଣିଜ୍ୟ ଉପରୁ ରାଷ୍ଟ୍ରର ନିୟନ୍ତ୍ରଣ ଉଠାଇ ଦିଆଯାଏ ବା ହ୍ରାସ କରି ଦିଆଯାଏ । ଏଭଳି ସରକାରୀ ନିୟନ୍ତ୍ରଣ ଉଚ୍ଛେଦର ମୁଖ୍ୟ କାରଣ ହେଉଛି ସରକାରଙ୍କ ଅପେକ୍ଷା ବଜାର, ଲୋକଙ୍କ ଚାହିଦା କଅଣ ଜଣାଇବା ପାଇଁ ଏହା ଉତ୍କୃଷ୍ଟ ବିଚାରକ । ସମାଲୋଚକଙ୍କ ମତରେ ଉଦାରୀକରଣର ଅର୍ଥହେଲା ଏହା ଦ୍ୱାରା ଉତ୍ପାଦନର ସାମାଜିକ ଲକ୍ଷ୍ୟ ଯଥା : ଅଧିକାଂଶ ଗରୀବ ଲୋକଙ୍କ ଅଭାବ ପୂରଣ କରିବା ଓ କର୍ମ ସଂସ୍ଥାନ ସୃଷ୍ଟି ଏବଂ ବ୍ୟାଘାତ ଘଟିଥାଏ । ଏଥିରେ କେବଳ ଧନୀ ଗୋଷ୍ଠୀ ହିଁ ଲାଭବାନ୍ ହୋଇଥାନ୍ତି ।

୯) ଉଦାରତା ବାଦ

ଏହା ଏକ ଅର୍ଥନୈତିକ ଦର୍ଶନ ଯାହା ଅର୍ଥନୀତି ସମ୍ବନ୍ଧୀୟ ସରକାରୀ ହସ୍ତକ୍ଷେପକୁ ସମ୍ପୂର୍ଣ୍ଣ ବର୍ଜନ କରେ । ଉତ୍ପାଦନ କିମ୍ବା ବାଣିଜ୍ୟ କ୍ଷେତ୍ରରେ କୌଣସି ସରକାରୀ ପ୍ରତିବନ୍ଧକ ରହେନାହିଁ । ଏହିଭଳି ମୁକ୍ତ ବାଣିଜ୍ୟ, ଅର୍ଥନୀତିର ଉନ୍ନତି ପାଇଁ ପ୍ରକୃଷ୍ଟ ବୋଲି ବିଚାର କରାଯାଏ । ଏପରି ଆଶାକରାଯାଏ ଯେ, ମୁକ୍ତ ବାଣିଜ୍ୟ କ୍ଷେତ୍ରରେ ବ୍ୟବସାୟୀମାନଙ୍କ ଉତ୍ପାଦନ ମଧ୍ୟରେ ପରିମାଣ ଓ ମାନ

ଇତ୍ୟାଦିକୁ ନେଇ ପ୍ରତିଦ୍ୱନ୍ଦିତା ବଢେ । ଏହାଦ୍ୱାରା ସବୁଠାରୁ ଉତ୍ତମ ସାମଗ୍ରୀ ଯଥେଷ୍ଟ ପରିମାଣରେ ଉତ୍ପାଦିତ ହୁଏ ଏବଂ ସମସ୍ତଙ୍କ ପାଇଁ ନିଯୁକ୍ତି ସୁଯୋଗ ସୃଷ୍ଟି ହୋଇପାରେ । ତଥାପି ବିଗତ ଶତାବ୍ଦୀର ମଧ୍ୟ ଭାଗ ଆଡକୁ ଏହାର ପ୍ରତିବାଦ କରାଗଲା ଓ ବିଂଶ ଶତାବ୍ଦୀର ତୃତୀୟ ଦଶନ୍ଧି ଆଡକୁ ଏହାକୁ ପ୍ରାୟତଃ ପରିତ୍ୟାଗ କରାଗଲା । ଏହା ପରିବର୍ତ୍ତେ କେନ୍‌ସଙ୍କର ମତବାଦକୁ ପୁଞ୍ଜିବାଦ ଅନୁକରଣ କଲା । କେନ୍‌ସ ଉଦାରୀକରଣଙ୍କୁ ପ୍ରତିରୋଧ କଲେ ଏବଂ ସରକାର ପୂର୍ଣ୍ଣ କର୍ମ ସଂସ୍ଥାନ ପାଇଁ ହସ୍ତକ୍ଷେପ କରିବାକୁ ଆହ୍ୱାନ ଦେଲେ । ଏହାଦ୍ୱାରା ପୁଞ୍ଜିବାଦ ତିଷ୍ଠି ରହିପାରିବ ଓ ପୁଞ୍ଜିବାଦର ଅଭିବୃଦ୍ଧି ଘଟିବବୋଲି କେନ୍‌ସ ମତ ଦେଲେ ।

## ୧୦) ବହୁଦେଶୀୟ ନିଗମ

ଏହି ବୃହତ କମ୍ପାନୀ ଗୁଡିକ ବହୁତ ଦେଶ ଓ ମହାଦେଶରେ ପରିବ୍ୟାପ୍ତ । ସେଗୁଡିକ ମଧ୍ୟରୁ ଅନେକଙ୍କ ପାଖରେ ପର୍ଯ୍ୟାପ୍ତ ସମ୍ବଳ ଅଛି ଯାହାକି ଗରୀବ ରାଷ୍ଟ୍ରମାନଙ୍କର ମୋଟ ସମ୍ବଳଠାରୁ ମଧ୍ୟ ଅଧିକ । ସେମାନ କୌଣସି ଗୋଟିଏ ଦେଶର ଆଇନ୍ ଅଧୀନରେ ଆସନ୍ତି ନାହିଁ । ସେମାନଙ୍କର ନିଷ୍ପତ୍ତି ଗ୍ରହଣ ବ୍ୟବସ୍ଥା ସମ୍ପୂର୍ଣ୍ଣ ଅଦୃଶ୍ୟ । ସେମାନେ କାହା ନିକଟରେ ଉତ୍ତରଦାୟୀ ନୁହଁନ୍ତି । ସେମାନେ କେବଳ ସେମାନଙ୍କର ଅତ୍ୟଧିକ ସମ୍ବଳ ନିଜ ବୋର୍ଡ ନିକଟରେ ଉତ୍ତରଦାୟୀ ହଅନ୍ତି ଯହାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଲାଭ । ସେମାନଙ୍କର ଅତ୍ୟଧିକ ସମ୍ବଳ ଥିବାରୁ ସେମାନେ ସରକାରୀ ନୀତିକୁ ସହଜରେ ପ୍ରଭାବିତ କରି ପାରନ୍ତି ।

## ୧୧) ଅଭିନବ ଉପନିବେଶବାଦ

ସିଧାସଳଖ ଶାସନ କ୍ଷମତା ହାତକୁ ନନେଇ, ପୂର୍ବର ଉପନିବେଶିକ ଢଙ୍ଗରେ ସେମାନ ବିକାଶଶୀଳ ରାଷ୍ଟ୍ରମାନଙ୍କର କଞ୍ଚାମାଲକୁ କମ୍ ଦରରେ ନିଜ ଦେଶକୁ ନିଅନ୍ତି । ଏହା ଏବେ ଧନୀ ରାଷ୍ଟ୍ରମାନଙ୍କର ଏକ ନୂଆ ପ୍ରକାର ଉପନିବେଶିକ ଚାଲ୍ । ଋଣଭାରରେ ବୁଡାଇ ଅସଙ୍ଗତ ସର୍ତ୍ତ ଦ୍ୱାରା ବିକାଶଶୀଳ ରାଷ୍ଟ୍ରମାନଙ୍କ ଉପରେ ନିୟନ୍ତ୍ରଣ ରଖି ଧନୀ ରାଷ୍ଟ୍ରଗୁଡିକ ସେମାନଙ୍କର ଯଥାସମ୍ଭବ ଲାଭ ଉଠାଉଛନ୍ତି । ହିସାବ କଲେ ଜଣାଯାଏ ବର୍ତ୍ତମାନ ସେମାନେ ଯେତିକି ପରିମାଣର ଅର୍ଥ ନେଇ ସାରିଲେଣି ତାହା ପୂର୍ବର ଉପନିବେଶିକ ସମୟଠାରୁ ଯଥେଷ୍ଟ ଅଧିକ ।

## ୧୨) ଅଭିନବ ଉଦାରତାବାଦ

ଏହା ହେଉଛି ୮୦ ଓ ୯୦ ମସିହା ମଧ୍ୟରେ ଉଦାରତାବାଦର ପୁନରୁତ୍‌ଥାନ । ଏହାର ମୁଖ୍ୟ ବିଷୟ ବସ୍ତୁ ହେଉଛି ଅନିୟନ୍ତ୍ରିତ ବଜାର ଯାହାଦ୍ୱାରା ସମସ୍ତେ ଅର୍ଥନୈତିକ ପ୍ରଗତି ହାସଲ କରିପାରିବେ । ଯଦିଓ ଧନୀଙ୍କ ଶ୍ରେଣୀ ଅଧିକ ଲାଭବାନ ହେବେ ତଥାପି ଗରିବ ଶ୍ରେଣୀ ମଧ୍ୟ ସ୍ୱଳ୍ପ ଲାଭବାନ ହୋଇପାରିବେ । ଯେହେତୁ ଉଦାରୀକରଣ 'ଜନହିତ' ନାମରେ ସରକାରଙ୍କ ପାଇଁ କିଛି ସାମାଜିକ ସେବାର ବ୍ୟବସ୍ଥା କରିଥାଏ, ଅଭିନବ ଉଦାରତାବାଦ ଏହାର ବଜାର ସମସ୍ୟାର ସମାଧାନ ପାଇଁ ପଥ ପ୍ରସ୍ତୁତ କରିଥାଏ । ସ୍ୱାସ୍ଥ୍ୟ, ଶିକ୍ଷା ଓ ସାମାଜିକ ନିରାପତା କ୍ଷେତ୍ରରେ ଗରିବଙ୍କୁ ନିଜପାଇଁ ସବୁକିଛି କରିବାକୁ ପଡେ, ଏବଂ ଯଦି ସେମାନେ ଏଥିରେ ବିଫଳ ହୁଅନ୍ତି ତେବେ ସେମାନଙ୍କୁ ଅଳସୁଆ ବୋଲି କୁହାଯାଏ ।

## ୧୩) ଘରୋଇ କରଣ

ଏହି ନୀତି ଦ୍ୱାରା ସରକାରୀ ଉଦ୍ୟୋଗଗୁଡ଼ିକୁ ସରକାର ଘରୋଇ କ୍ଷେତ୍ରକୁ ସଂପୂର୍ଣ୍ଣ ରୂପେ ହସ୍ତାନ୍ତର କରିଦିଅନ୍ତି ।

## ୧୪) ସାମୟିକ ଅର୍ଥନୈତିକ ଅବନତି

ଏହା ହେଉଛି ଏକ ପ୍ରକାର ଅର୍ଥନୈତିକ ସଙ୍କଟ, ଯେଉଁଥିରେ ଚାହିଦା ହଠାତ୍ ହ୍ରାସ ପାଏ ଏବଂ ପ୍ରକୃତ ସାମଗ୍ରୀ ଗୁଡିକ ବିକ୍ରି ହୋଇପାରେ ନାହିଁ । ଏହା ଶିଳ୍ପପତି ମାନଙ୍କ ପାଇଁ ଏକ ମସ୍ତବଡ କ୍ଷତି ଘଟାଇଥାଏ । ଶିଳ୍ପ ପ୍ରଗତିରେ ବାଧା ଆଣିଥାଏ । ଏହାଦ୍ୱାରା ପରୋକ୍ଷରେ ଶ୍ରମିକ ଉଚ୍ଛେଦ ହୁଏ । ଫଳତଃ ବେକାରୀ ସମସ୍ୟା ବହୁ ପରିମାଣରେ ବୃଦ୍ଧି ପାଏ ।

## ୧୫) ଢାଞ୍ଚାଗତ ସୁଧାର କାର୍ଯ୍ୟକ୍ରମ

ଅନ୍ତଃରାଷ୍ଟ୍ରୀୟ ମୁଦ୍ରାକୋଷ, ବିଶ୍ୱବ୍ୟାଙ୍କ ଏହି ନୀତି, ଋଣ ନେଇଥିବା ରାଷ୍ଟ୍ରମାନଙ୍କ ଉପରେ ଋଣ ପରିଶୋଧ ନିମିତ୍ତ କିମ୍ବା ନୂଆ ଋଣ ନେବା କ୍ଷେତ୍ରରେ ପ୍ରୟୋଗ କରିଥାନ୍ତି । ଏହି ସର୍ତ୍ତ ଯାହାକି ସାଧାରଣତଃ ଗୁପ୍ତ ରଖାଯାଇଥାଏ, ତାହା ଋଣୀ ରାଷ୍ଟ୍ରମାନଙ୍କର ଅର୍ଥନୈତିକ ବ୍ୟବସ୍ଥାରେ କେତେକ ସରକାରୀ ଆଇନ୍ ଓ ନୀତିକୁ ପରିବର୍ତ୍ତନ କରିବାକୁ ଦୃଢ ଭାବରେ ନିର୍ଦ୍ଦେଶ ଦିଏ ।

## ୧୬) ବିଶ୍ୱବ୍ୟାଙ୍କ

ଏହା ହେଉଛି ଏକ ଅନ୍ତଃରାଷ୍ଟ୍ରୀୟବ୍ୟାଙ୍କ, ଯାହାର ଅଂଶଧନ ଧନୀ ରାଷ୍ଟ୍ରମାନଙ୍କ (ମୁଖ୍ୟତଃ ଆମେରିକା) ହାତରେ ରହିଥାଏ ।

ଅନ୍ୟ ବ୍ୟାଙ୍କ ଗୁଡିକ ଭଳି ଏହି ବ୍ୟାଙ୍କ ଜମା ଗ୍ରହଣ କରି ଅର୍ଥ ଋଣ ପ୍ରଦାନ କରେ । ଏହାର ଜମାକାରୀ ମାନେ ମୁଖ୍ୟତଃ ଧନୀ ରାଷ୍ଟ୍ର ଅଟନ୍ତି । ଉନ୍ନୟନ ନାଁରେ ଏମାନେ ମୁଖ୍ୟତଃ ବିକାଶଶୀଳ ରାଷ୍ଟ୍ରମାନଙ୍କୁ ଋଣ ଦେଇଥାନ୍ତି । ମାତ୍ର ଏହି ଋଣ କେଉଁ ଭଳି ଖର୍ଚ୍ଚ କରାଯିବ ସେ ସମ୍ବନ୍ଧରେ ଜାଣିବା ପରେ ହିଁ ଏମାନେ ଋଣ ପ୍ରଦାନ କରିଥାନ୍ତି । ପୁନଶ୍ଚ ପାଶ୍ଚାତ୍ୟ ଦେଶ ଅନୁସାରେ ଏମାନେ ଅନ୍ୟଦେଶର ବିକାଶର ଅର୍ଥ ନିର୍ଣ୍ଣୟ କରିଥାନ୍ତି । ଏପରିକି ସ୍ୱାସ୍ଥ୍ୟ କ୍ଷେତ୍ରରେ କାର୍ଯ୍ୟସୂଚୀକୁ ସମ୍ପୂର୍ଣ୍ଣ ପ୍ରସ୍ତୁତ କରିସାରିବା ପରେ ଏମାନେ ଋଣ ପ୍ରଦାନ କରିଥାନ୍ତି । ଏଗୁଡିକ ସାହାଯ୍ୟ କିମ୍ବା ବିନା ଅନୁଦାନ ନୁହେଁ । ଏଗୁଡିକ ସୁଧସହ ପରିଶୋଧ ଯୋଗ୍ୟ ଋଣ ।

୧୭) ବିଶ୍ୱ ବାଣିଜ୍ୟ ସଂଗଠନ

ଏହା ଏକ ଅନ୍ତରାଷ୍ଟ୍ରୀୟ ସଂଗଠନ । ଏଥିରେ ସେହି ଦେଶମାନେ ସଦସ୍ୟ ଅଟନ୍ତି ଯେଉଁମାନେ ଅନ୍ତରାଷ୍ଟ୍ରୀୟ ବାଣିଜ୍ୟ ରାଜିନାମାରେ ସ୍ୱାକ୍ଷର କରିଛନ୍ତି । ଏମାନଙ୍କ ମଧ୍ୟରୁ ଅଧିକାଂଶ ସାଧାରଣତଃ ବିକାଶଶୀଳ ରାଷ୍ଟ୍ରମାନଙ୍କର ମଙ୍ଗଳ ଚାହାନ୍ତି ନାହିଁ । ଏହି ସଙ୍ଗଠନ ଦେଶ ଦେଶ ମଧ୍ୟରେ ବ୍ୟବସାୟୀକ କଳହ ସୃଷ୍ଟିକରେ ଏବଂ ବାଣିଜ୍ୟ ସର୍ତ୍ତାବଳୀ ପ୍ରଣୟନ କରେ ଓ କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରେ । ଏହା ମୁଖ୍ୟତଃ ପାଶ୍ଚାତ୍ୟ ଦେଶଗୁଡିକ ଦ୍ୱାରା ପରିଚାଳିତ । କିନ୍ତୁ ଯେହେତୁ ଅନ୍ୟାନ୍ୟ ଦେଶ ମାନଙ୍କର ପ୍ରତିନିଧିତ୍ୱ ଏଥିରେ ରହିଛି ତେଣୁ ସେମାନେ ସେମାନଙ୍କର ମତାମତ ଏଠାରେ ରଖିପାରିବେ ଏବଂ ନିଜପାଇଁ କ୍ରୟ ବିକ୍ରୟର ଚୁକ୍ତି କରିପାରିବେ ।

ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା, ଏକ ବିଜ୍ଞାନ ଭିତ୍ତିକ ଜନ ସଂଗଠନ । ସାକ୍ଷରତା, ଶିକ୍ଷା ଓ ବିଜ୍ଞାନର ଆଧାରରେ ଏକ ଆତ୍ମନିର୍ଭରଶୀଳ ସମାଜ ଗଠନ ପାଇଁ ଏହି ସମିତି ଉଦ୍ୟମରତ ।

ସ୍ୱାସ୍ଥ୍ୟସେବା କ୍ରମେ ଅଧିକ ବ୍ୟୟବହୁଳ ହୋଇପଡୁଛି । ସାଧାରଣ ଲୋକଟି ଅତି ସାଧାରଣ ରୋଗରେ ପଡ଼ି ହନ୍ତସନ୍ତ ହୋଇପଡୁଛି । ସାଧାରଣ ସ୍ୱାସ୍ଥ୍ୟ ଜ୍ଞାନର ଅଭାବ ଏହାର ଏକ ମୁଖ୍ୟ କାରଣ ଅଟେ ।

ଆମ ଚାରିପାଖରେ ଅନେକ ଔଷଧୀୟ ଗଛଲତା ଭରି ରହିଛି । ସାଧାରଣ ସ୍ୱାସ୍ଥ୍ୟ ଜ୍ଞାନ ସହିତ ଏ ସବୁର ଉପଯୋଗ କରିପାରିଲେ ଓ ସେ ସବୁକୁ ଚିହ୍ନି ପାରିଲେ, ସେ ସବୁର ସଂରକ୍ଷଣ ପାଇଁ ନିଜ ନିଜ କ୍ଷେତ୍ରରେ ଉଦ୍ୟମ କରିବେ ।

ଏହି ଆଶା ରଖି ସମିତି ତରଫରୁ ଘର ବଇଦ ପୁସ୍ତକମାଳା ପ୍ରକାଶ କରାଯାଇଛି । ଏ ସବୁର ଉପଯୁକ୍ତ ବ୍ୟବହାର କରି ଏକ ଆରୋଗ୍ୟ ସମାଜର ସ୍ୱପ୍ନକୁ ସାକାର କରିବା ପାଇଁ ସମିତି ତରଫରୁ ସମସ୍ତଙ୍କର ସହଯୋଗ କାମନା କରୁଛୁ ।

ଭାରତ ଜ୍ଞାନ ବିଜ୍ଞାନ ସମିତି - ଓଡ଼ିଶା
ସି-୨, ବରମୁଣ୍ଡା ହାଉସିଂ ବୋର୍ଡ କଲୋନୀ
ଭୁବନେଶ୍ୱର - ୭୫୧୦୦୩
ଫୋନ୍ : ୫୫୦୮୯୧